# କୃପାମୟୀ ଜଣାଣ ।

ଶ୍ରୀ ବୀରବିକ୍ରମ ଦେବ ଯୁବରାଜଙ୍କ
ବିରଚିତ ଓ ପ୍ରକାଶିତ ।

PRINTED BY S. B. RAI.
AT THE
**RAY PRESS.**
CUTTACK.
1903



# ଉତ୍ସର୍ଗ

କଲ୍ୟାଣଭାଜନ ଶ୍ରୀତି ଶ୍ରୀଯୁକ୍ତ ଧରଣୀଧର ଦେବ

ରାଜା । ବା । ହଦେଣ୍

ମହାତ୍ମନ୍ !

ଆପଣଙ୍କର ସୌଜନ୍ୟତା, ସରଳତା ଓ ଲୋକ-ପ୍ରିୟତା ପ୍ରଭୃତି ଗୁଣାବଳୀରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ଏହି କ୍ଷୁଦ୍ର ଚତୁର୍ଦ୍ଦଶୀ ଆପଣଙ୍କ ନାମରେ ଉତ୍ସର୍ଗ କଲି । ଇତି ।

ଆପଣଙ୍କର

ମଙ୍ଗଳାକାଙ୍କ୍ଷୀ

ଶ୍ରୀ ବୀରବର୍ମ ଦେବ ।



# କୃପାମୟୀ ଜଣାଣ ।

---

କରୁଣାସାଗରା ମାତଃ ପର୍ବତନନ୍ଦନୀ ,
କରେ ତ୍ରିଶୂଳ ଶୋଭଇ ପ୍ରସନ୍ନବଦନୀ ;
କାପାଳୀ ମନମୋହନୀ ସଙ୍କଟମୋଚନୀ ,
କର ବାରେ ଅନୁକମ୍ପା ମୋ ବନ୍ଦନ ଘେନ ;
କୃପାମୟି ଗୋ
କଷ୍ଟପଦେ ହୋଇଛୁ ଆଶ୍ରୟୀ ଗୋ । ୧ ।

ଖର୍ବ କର ଗର୍ବ ଯେହ୍ନେ କଲେ ଶ୍ରୀଶୁମ୍ଭରେ ,
ଖଣ୍ଡ ଖଣ୍ଡ ପାପୀ ତାରୁଅଛ ସନ୍ତତରେ ;
ଖଡ୍ଗି ଧର ମହିମା କେ ଲେଖିବ ସଂସାରେ ,
ଖୋଜିଲେ ଶ୍ରୀଚରଣ ଅନ୍ତ ନ କରିବେ ଥରେ ;
ଖଡ୍ଗହସ୍ତା ଗୋ
ଖଣ୍ଡ ମୋହର ଦୁଃସହ ବ୍ୟଥା ଗୋ । ୨ ।

ଗଞ୍ଜନା ଦିଅନ୍ତେ ଦୈତ୍ୟେ ସୁରଗଣ ବ୍ୟସ୍ତେ ,
ଗୁପତେ ଜଣାନ୍ତେ ତାଙ୍କୁ ନାଶିଲ ତ୍ୱରିତେ ;
ଗରିଷ୍ଠ ସଙ୍କଟେ ଆସି ପଡିଅଛୁ ମୋତେ ,
ଗୁହାରୁଛୁ ବାରମ୍ବାର ଘେନ ଦିବ୍ୟରତ୍ନେ ;

ଗିଦସ୍ତୁତା ଗୋ •
ଗଳ ଧରି ନାହିଁ କେ ରଖନ୍ତା ଗୋ । ୩ ।

ଘୋଟି ନବଘନ ପରି ବେଳୁଁ ବେଳ ଦୁଃଖ ,
ଘୋଡ଼ାଉଛି ମନାକାଶେ ସ୍ୱଚ୍ଛନ୍ଦତା ସୂର୍ଯ୍ୟ ;
ଯୁଞ୍ଝାଅ କଷଣ ବାଟେ ନ ହୋଇ ବିମୁଖ ,
ଘୋର ବିପତ୍ତି ସାଗରେ ଭାସୁଛି ନିରେଖ ;
ଘଟେଶ୍ୱର ଗୋ
ଘଡ଼ିଏ ହେଉଛି ଯୁଗ ପରି ଗୋ । ୪ ।

ଙଅଁସ-ଙଶୀ ପରାପ୍ତ ହେଲା ତନୁ ମୋର ,
ଙକ୍ଳେଦେ ପ୍ରାଣକୁ ଅଛି ଅଳ୍ପ ଅବସର ;
ଙକ୍ଷଣା ତହିଁରେ ପୁଣି ହୋଇ ଅଗ୍ରସର ,
ଙପାୟ ନ ଦିଶେ କସ କରିବ ଏଥର ;
ଙଗ୍ରତାରା ଗୋ
ଙ୍ଗା କର ଶୀଘ୍ର କଷ୍ଟଭାରା ଗୋ । ୫ ।

ଚତୁର୍ଦ୍ଦଶ ପୁର ଯାକ ତୋହର ଆଶ୍ରିତ ,
ଚନ୍ଦ୍ରଚୂଡ଼ ନୃତ୍ୟ ଦେଖି ହେଲ ବଶୀଭୂତ ;
ଚମୂଚର ଭୃଙ୍ଗ ସିନା ପ୍ରାଣୀ ଚମୂଦଳ ,
ଚରଣେ ବନ୍ଦିଲେ ସର୍ବେ ହୋଇବେ ଶୀତଳ ;
ଚଣ୍ଡବତି ଗୋ
ଚୂର୍ଣ୍ଣେ ଯୁଞ୍ଝାଅ ମୋ ତାପ-ରାଶି ଗୋ । ୬ ।

ଛଟପଟ ହୋଇ କେତେ ରଖିବ ଜୀବନ ,
ଛଦ୍ମ କରି ହସୁଛନ୍ତି ପ୍ରତିବାଦୀ ଜନ ;

ଛିଦ୍ର ନ ମଣି ମୋ ଗିର ହୋଇ ପରସନ୍ନ
ଛିଣ୍ଡାଅ ଏ ଚନ୍ଦ୍ରାରକ୍ଷ ହୋଇଛି ବନ୍ଧନ ;
ଛିନ୍ନମସ୍ତା ଗୋ
ଛନ୍ନ ହେଲି ଦେଖ ମେ ଅବସ୍ଥା ଗୋ । ୭ ।

ଜପଶୀଳ ହୁଏ ପ୍ରାଣୀ କଲେ ତୋ ଅର୍ଚ୍ଚନା ,
ଜୟା ନାମେ ଏଣୁ ଖ୍ୟାତ ହୋଇଲୁ ଅପର୍ଣ୍ଣା ;
ଜଗତରେ ଜନଙ୍କର ହୁଏ ଯେ କାମନା ,
ଜାଣି ବରଦାୟୀ ହେଉ ନ ହୋଇ ବିମନା ;
ଜଗଦ୍ଧାତ୍ରି ଗୋ
ଜାଗ୍ରତଙ୍କେ କର ମୋ ଉନ୍ନତି ଗୋ । ୮ ।

ଝଙ୍ଗଡ଼ରେ ନ ପକାଅ ଝଙ୍କଡ଼ବାସିନୀ ,
ଝିମିଟି ହେଲାଣି ମୋର ପକ୍ଷେ କଲ୍ପ ବେନ
ଝିଙ୍କାସ ଅଡ଼ ସହି ନ ପାରେ କାତ୍ୟାୟିନୀ ,
ଝାସ ଦେବ ଜଳେ ନ ହେଲେ ମୋ ଦନ୍ତିନୀ
ଝାଡ଼େଶ୍ୱରୀ ଗୋ
ଝଟିରେ କର ଏଥୁଁ ପାର ଗୋ । ୯ ।

ଅର୍ଜୁନଙ୍କୁ ମହାମାୟା ହୋଇଣ ପ୍ରସନ୍ନ ,
ଅକ୍ଷୟତୂଣ ପ୍ରଦାନେ କଲୁ ଧନମାନ ;
ଅନାୟାସେ କୁରୁବଳ କଲ ସେ ଛେଦନ ,
ଅକଣ୍ଟକ ରାଜ୍ୟେ ହେଲେ ଯୁଧିଷ୍ଠି ରାଜନ ;
ଅନ୍ନପୂର୍ଣ୍ଣା ଗୋ
ଅନ୍ତରରେ ହର ମୋ ବେଦନା ଗୋ । ୧୦ ।

କୃପାମୟୀ ଜଣାଣ ।

ଝୋକାଝୋକ କଥା ବୋଲି ନୋହିବା ହରଷ ,
ଝୋଳ ରକ୍ଷଣେ ମୋ କେହି ନାହିଁ ତୋ ସଦୃଶ
ଝୋଳ କରୁଣାରେ ପୂର୍ଣ୍ଣ କର ମୋର ଅଙ୍ଗ ,
ଝିଙ୍କିଏ ବିଳମ୍ବ ହେଲେ ହେବି ମୁଁ ବିନାଶ ;
ଝଙ୍କହସ୍ତା ଗୋ
ଝୋଳ ରଖ ଯାଉ ଦୁରାବସ୍ଥା ଗୋ । ୧୧ ।

ଠାବ କରନ୍ତୁ ମାନସେ ଅଯୋନିସମ୍ଭୂତା ,
ଠେକ ଦେଇ ରଖ ମୋତ ଶଙ୍କରି-ବନିତା
ଠିକ ଠିକ କର ଜଣାଇଲି ଜଗଜ୍ଜିତା ,
ଠଉରବ କେହ୍ନେ ଛିଳେ ନ ଛୁଟେ ମମତା ;
ଠାକୁରାଣି ଗୋ
ଠେଲ ପାପତାପ ଦିଅ ଶାନ୍ତି ଗୋ । ୧୨ ।

ଡଂକରଣ ଅହି-ଶରକୁ ରଘୁକୁଳ ପତି ,
ଡାକନ୍ତେ ପ୍ରସନ୍ନ ବର ଦେଲୁ କାଳରାତି ;
ଡରିଁ ନୋହି ଗରୁଡ଼କୁ ସ୍ମର ଝଟତି ,
ଡର ପଳାଇବ ନାଗ ଶୁଭିଲା ଭାରତୀ ;
ଡାକେଶ୍ୱରି ଗୋ
ଡିଣ୍ଡିମ ତା ବାଜେ ଦିଗ ପୂରି ଗୋ । ୧୩ ।

ଢିଳ ଯେବେ ଜୀବ ଯିବ ସ୍ଫୁଟ କରୁଁ କରୁଁ ,
ଢାଙ୍କି ଝାନ୍ତୁ ପଟ୍ଟେ କି କଣ୍ଠବ ଶିବ-ଭୀରୁ ;
ଢୋଳ ସୁଧା କିଏ ଦେବ ମରଣ ଜ୍ୱରରୁ ,
ଢକ୍କା ଅକ୍ଷୟାତି କେବଳ ବାଜିବ ଏଥିରୁ ;

ତର୍ମଂଦନ୍ୟା ଗୋ
ତାଳେ ନ ଟଳନ୍ତି ମନ୍ଦ ଚନ୍ଦ୍ରା ଗୋ । ୧୪ ।

ଇନ୍ଦ୍ର ସଙ୍ଗେ ଦ୍ୱନ୍ଦ୍ୱ କରି କେତେକ ଅସୁର ,
ଇତସ୍ତତଃ କରିବାରୁ ପଶି ସ୍ୱର୍ଗପୁର ;
ଧର୍ଷା ବହୁ ନାଶ କରି ଦୁଷ୍ଟ ନିଶାଚର ,
ଭଷିତେ ନାଶିଲ ଦୁଃଖ ବୃନ୍ଦାରକଙ୍କର ;
ଇନ୍ଦ୍ରାଣୀ ଗୋ
ଇପ୍ସିତ କେ କରିବ ତୋ ଅଣି ଗୋ । ୧୫ ।

ତତ୍ତ୍ୱଜ୍ଞାନୀମାନେ ଧ୍ୟାନ କରନ୍ତି ତୋ ପଦେ ,
ତତ୍ତ୍ୱବିଧାରକ ତାଙ୍କ ହେଉ ସ୍ୱଚ୍ଛହୃଦେ ;
ତ୍ରିପୁର-ଅରି-ମନୋହାରୀ ବିଶାରଦେ ,
ତବ କୃପା ବିନା କେ ରହିବ ଅପ୍ରମାଦେ ;
ତପୋବନ୍ତି ଗୋ
ତୁରିତରେ ଫେଡ ମୋ ଦୁର୍ଗତି ଗୋ । ୧୬ ।

ଅବିରଞ୍ଚିଠାରୁ ଏହା ଶୁଣିଛୁ ଶ୍ରବଣ ,
ଅଚ୍ଛପାନେ ବିଷ୍ଣୁ ମଧୁ କଲା ବିନ୍ଦୁ ରଣ ;
ଅପ୍ରତେଜ୍ୟ ହର ତୋତେ କଲେ ଜଣାଣ ,
ଅଷ୍ଟ୍ରାରେ ବର ଯାଚିଲା ଦୈତ୍ୟ ତତକ୍ଷଣ ;
ସ୍ତୁଣୁନାରୀ ଗୋ
ଥୋକେ ବଡ଼ାଇଛୁ ଏହିପରି ଗୋ । ୧୭ ।

ଦଶରଥ ଭୂପେ ଶନି କଲେ ସମର ,
ଦେଶ ରକ୍ଷା ପାଇଁ ନୃପ ଜୁଝିଲେ ଅପାର ;

ଦିଶନ୍ତେ ଗ୍ରହନାୟକ ନିର୍ମାନ ବହ୍ନାର ,
ଦୈନ୍ୟଭାବେ ଆରମ୍ଭିଲେ ସ୍ତବକୁ ତୋହର ।
ଦକ୍ଷସୁତା ଗୋ
ଦେଲୁ ଜୟ ହୋଇ ପ୍ରସନ୍ନତା ଗୋ । ୧୮ ।

ଧୁରନ୍ଧର ରାମାନୁଜ ଇନ୍ଦ୍ରଜିତ ନାଶେ ,
ଧରି ତୋର ନାମ ଯୁଦ୍ଧେ ପଶନ୍ତେ ସାହସେ ;
ଧାଡ଼ିକାରେ ଜୟଲକ୍ଷ୍ମୀ ଦେଲୁ ତାଙ୍କୁ ତୋଷେ
ଧନ୍ୟବାଦ ଲଭିଲେ ସେ ମହାବୀର ବଂଶେ ;
ଧୂମ୍ରାଷେ ଗୋ
ଧର ତୋଳ ଭ୍ରୂସନ୍ନି ଦୂରତେ ଗୋ । ୧୯ ।

ନର୍ମାକ୍ଷୀ ରକ୍ଷଣେ ଏକା ତୋହର ଅବର୍ତ୍ତି
ନାଶି ଦୁର୍ଗତିଙ୍କ ଦୁର୍ଗା ନାମେ ହେଲୁ ଖ୍ୟାତ
ନ ସହ୍ନୁ ପରା ଏ ଚରାଚରଙ୍କ ଆରତ ,
ନ ଖଣ୍ଡିବୁ ଯେବେ ମୋର ଦୁଃସହ ଦୁଷ୍କୃତ
ନଗସୁତା ଗୋ
ନିଖିଳରେ ହୋଇବୁ ନିନ୍ଦିତା ଗୋ । ୨୦ ।

ପଦ୍ମମତେ ବୈଷ୍ଣବୀ ମାତଃ ଭକ୍ତପରାୟଣୀ ,
ପରଶୁ କୁଠାର ଖଡ୍ଗ ଖପରଧାରିଣୀ
ପାହାଡ଼ ପୃଷ୍ଠେ ଆରୋହି କରୁ ତୁ ଭ୍ରମଣୀ ,
ପାର୍ଶ୍ୱେ ବେଢ଼ି ରହିଥାନ୍ତି ଯୋଗିନୀ ନିଃଶ୍ରେଣୀ
ପୀତାମ୍ବରା ଗୋ
ପାପିଷ୍ଠ ଦନୁଜ ଦର୍ପହରା ଗୋ । ୨୧ ।

ଫଳ ଯାହା ତହୁଁ କିଛି ଥାଏଟି କପାଳେ ,
ଫଣିଧର-ବାମା ତାହା ନାଶୁ ଅବହେଳେ ;
ଫାଙ୍କ ଯେବେ ଅଛୁ ଭୁଲେ କୃପା କରି ତିଳେ ।
ଫଟାଲଲାଟ ପ୍ରାଣୀ ମୁଁ ରଖ ମହୀତଳେ
ଫଳଦାୟି ଗୋ ।
ଫେଡ଼ ମୋ ବେଦନା ମହାମାୟି ଗୋ । ୧୨ ।

ବଦ୍ଧମୂଳ କରି ନାମ ଭଜୁଁ ଭଜୁଁ ଘୋର ,
ବିପଦରେ ଦାସ ଯେବେ ହେବ ନାରଖାର ;
ବରାଭୟଦାତ୍ରୀ ଥରେ ହୃଦରେ ବିହର ,
ବନ୍ଧମୂର୍ତ୍ତି ହେବାର କି ଉଚିତ ବେଶ୍ୱର ;
ବଳବତି ଗୋ
ବହ୍ନିବୃଷ୍ଟି ସଂସାରେ ଝାଂପାତି ଗୋ । ୧୩ ।

ଭବପ୍ରଳୟରେ ବିଷ୍ଣୁ ହୋଇ ଜଳଶାୟୀ ,
ଭଦ୍ରେ ଚିନ୍ତା କଲେ ଧରା ହେଉ ଚିରସ୍ଥାୟୀ
ଭୟଙ୍କରୀ ଶକ୍ତିରୂପା ଉମା ଅନନ୍ୟାୟୀ ,
ଭକ୍ତ ଜାଣି ବର ଦେଲୁ ମନ ଅନୁଯାୟୀ ;
ଭଦ୍ରକାଳି ଗୋ
ଦୁଃଖିନୀ ପ୍ରାଣୀଙ୍କି ରଖୁ ତୋଳି ଗୋ । ୧୪ ।

ମହିଷ-ଦାନବ ତ୍ରାସେ ଦେବେ ହୋଇ ଭୀତ ,
ମଧୁହାରୀ ପାଦପଦ୍ମେ ହୋଇଲେ ଆଶ୍ରିତ ,
ମାଧବ ସ୍ୱଗ ରକ୍ଷଣେ ହେବାରୁ ସ୍ତମ୍ଭିତ ,
ମାରଭାତ କ୍ରୋଧାନଳୁଁ ହୋଇଲୁ ସମ୍ଭୂତ ;

ମାହେଶ୍ୱରୀ ଗୋ
ମହୀ ଉଦ୍ଧାରିଲୁ ଦୈତ୍ୟ ମାରି ଗୋ । ୧୫ ।

ଯୁଗାନ୍ତର ଭେଦେ କେତେ ନାମ ଅଛୁ ବହି ,
ଯୋଗାସନେ ବସି ଯୋଗୀ ଯାହୁବେ କି କହି ;
ଯୋଗମାୟାରେ ଜମନ୍ତି ରହିଅଛୁ ମହିଁ ,
ଯଥାର୍ଥ ସ୍ତୁତି କରନ୍ତି ସଖି ମୋର କାହିଁ
ଯଶୋବନ୍ତି ଗୋ ,
ଲେବ ଫେଡ଼ ମୋ ହୃଦୟଭ୍ରାନ୍ତି ଗୋ । ୧୬ ।

ରକ୍ତବୀର୍ଯ୍ୟ ରକ୍ତୁଁ ଜାତ କରୁଁ ସେନାଚୟ ,
ରାକ୍ଷସ ସମର ଦେଖି ଦେବେ କଲେ ଭୟ ;
ରକ୍ତପା ସେ କାଳେ ଅଙ୍ଗ କରଣ ଉଦୟ ,
ରଙ୍ଗେ ଅଟ୍ଟହାସେ ରକ୍ଷକୁଳ କଲୁ କ୍ଷୟ ;
ରକ୍ତାମ୍ବରା ଗୋ
ରଙ୍ଗେ ବନାଇଲୁ ଧରା-ଧାରା ଗୋ । ୧୭ ।

ଲଘୁଜୀବ ମୁଁ ତୋର କି କରନ୍ତ ବର୍ଣ୍ଣନ
ଲମ୍ବ ଲମ୍ବ ଜିହ୍ୱା ମା ଗୋ ଘୂର୍ଣ୍ଣିତ ଲୋଚନ ;
ଲଲାଟପଟେ ସିନ୍ଦୂର ଅତି ଶୋଭିବନ ,
ଲମ୍ବିଥାଇ ଗଳଦେଶେ ନରମୁଣ୍ଡମାନ
ଲଙ୍କେଶ୍ୱର ଗୋ
ଲଘୁ କର ଯାରୁ ମହାଗିରି ଗୋ । ୧୮ ।

ବସିବାରୁ ସେନାପତି ପଦେ ଚଣ୍ଡମୁଣ୍ଡ ,
ବିଷାଦ ଘୋଟିଲା ଦୂରେ କମ୍ପିଲା ବ୍ରହ୍ମାଣ୍ଡ ;

ବିବୁଧ ସ୍ତବ ରଚିଲେ ହୋଇ ଏକକଣ୍ଠ ,
ବିନାଶ କରି ଝଟିତି ଦାନବଙ୍କ ପିଣ୍ଡ ;
ବିକରାଳ ଗୋ
ବନ୍ଧନେ ଦୈତ୍ୟଙ୍କୁ ଦେଲୁ ଦଳ ଗୋ । ୨୯ ।

ଶୁମ୍ଭ ନିଶୁମ୍ଭ ନିରତେ କରୁ ଘୋରରଣ ,
ଶୋଣିତର ସ୍ରୋତସ୍ୱତୀ ହେଲା ପ୍ରସ୍ରବଣ
ଶ୍ରୀକରେ କୃପାଣ ଘେନ କରନ୍ତେ ପ୍ରୟୁଣ ,
ଶଙ୍କା ବହି ଦୈତ୍ୟକୁଳ ହେଲେ ରଣଭଣ ;
ଶାକାମ୍ଭରି ଗୋ
ଶୀର୍ଷକ ଅଣିଲୁ ଦୈତ୍ୟ ମାରି ଗୋ । ୩୦ ।

ଷଡ଼ାନନମାତ ମା ତୁଗା ଜଗତରକ୍ଷିତା ,
ଷଟ୍‌କର୍ମମାନଙ୍କର ଭୁକ୍ତି କରତା ;
ଷଡ଼ପ୍ରଜ୍ଞ ମୁହିଁ ମୋର ନାହିଁ ଟିକେ ଚେତା ,
ଷଡ଼ଶାସ୍ତ୍ର ଦାନ କରି ବଢ଼ାଅ କ୍ଷମତା ;
ଷଡ଼ଭୁଜା ଗୋ
ଷଡ଼ଅର୍ଦ୍ଧ ଲୋକେ ପାଉ ପୂଜା ଗୋ । ୩୧ ।

ସର୍ବାଣୀ ଗିରିଜା ରଣଚଣ୍ଡୀ ଭୈରବୀ ,
ସର୍ବମଙ୍ଗଳା କାମାକ୍ଷୀ କାଳୀ ମହାଦେବୀ ;
ସର୍ବଂସହା ପାଳନୀ ସ୍ୱର୍ଗେ ତୋ ପଦବୀ
ସର୍ବଦା ସେ ଶ୍ରୀପଦ୍ମର ଯୁଗେ ଅଛୁ ସେବ ;
ସୁରେଶ୍ୱରି ଗୋ
ସଙ୍କଟରୁ ତାରେ କର ପାରି ଗୋ । ୩୨ ।

ହଜି ଯାଉଅଛୁ ଜ୍ଞାନ ଥରକୁ ଥରକୁ ,
ହୋଇ ଏ ଅପଢ ଧ୍ୱାନ୍ତ ଅଚ୍ଛାଦେ ନେତ୍ରକୁ ;
ହେରମ୍ବଜନନୀ ଥରେ କୃପା-ତପନକୁ ,
ହୃଦ୍କେ ଉଦେ କର ଦୁଃଖ ପଳାଉ ଦୂରକୁ ;
ହୈମବତି ଗୋ
ହଉରାଣ ହେଲୁ ଦିନ ରାତି ଗୋ । ୩୩ ।

କ୍ଷଣଭଙ୍ଗୁର ସଂସାର ବୁଦ୍ବୁଦ୍ ଆକାର ,
କ୍ଷତବ୍ରତ ପୁଣି ହେଉଅଛୁ ନିରନ୍ତର ;
କ୍ଷରିତ ହୁଏ ଭାବିଲେ ନେତ୍ରୁ ନୀରଧାର ,
କ୍ଷୟ କରି ପାପ କ୍ଷିପ୍ରେ ବାଞ୍ଛା ପୂର୍ଣ୍ଣ କର ;
କ୍ଷମାଶୀଳେ ଗୋ ।
କ୍ଷୋଭେ ଶ୍ରୀ ବୀର ବିକ୍ରମ ବୋଲେ ଗୋ । ୩୪ ।

